# ବିଜ୍ଞାନ କାହାପାଇଁ?



ଡକ୍ଟର ଦେବକାନ୍ତ ମିଶ୍ର

# ବିଜ୍ଞାନ କାହା ପାଇଁ ?

ଲେଖକ :

**ଡକ୍ଟର ଦେବକାନ୍ତ ମିଶ୍ର**

ଏମ୍. ଏସ୍‌ସି., ଡି. ଲିଟ୍.

ଉପାଧ୍ୟକ୍ଷ,

**ରେଭେନ୍‌ସା କଲେଜ, କଟକ**

ପ୍ରକାଶକ :

**ସୁଧା ପ୍ରକାଶନ**

ବାଲୁ ବଜାର, କଟକ-୭୫୩୦୦୨

# ବିଜ୍ଞାନ କାହା ପାଇଁ ?

ଲେଖକ ·
ଡକ୍ଟର ଦେବକାନ୍ତ ମିଶ୍ର
ଏମ୍. ଏସ୍‌ସି., ଡି. ଲିଟ୍
ଉପାଧ୍ୟକ୍ଷ,
ରେଭେନ୍‌ସା କଲେଜ, କଟକ

ପ୍ରକାଶକ :
ସୁଧା ପ୍ରକାଶନ
ବାଲୁ ବଜାର
କଟକ-୭୫୩୦୦୨

ପ୍ରଚ୍ଛଦ ପଟ୍ଟ ଓ ଅଙ୍ଗସଜ୍ଜା :
ଅସୀତ ମୁଖାର୍ଜୀ

ପ୍ରଥମ ସଂସ୍କରଣ :
୧୯୮୭

ମୁଦ୍ରାକର :
ଲୋକଶକ୍ତି ପ୍ରେସ
ଚାନ୍ଦନୀଚୌକ ଗୋପାଳପାଟଣା
କଟକ-୭୫୩୦୦୧

ମୂଲ୍ୟ : ୪-୦୦

# ସୂଚନା

ବିଜ୍ଞାନ କ'ଣ ? ଏହା କ'ଣ କେବଳ ଧନୀ ଲୋକଙ୍କ ହାତ ଶକ୍ତ କରୁଛି ? ଗରିବ ଲୋକମାନଙ୍କୁ ଶୋଷଣ କରିବା ପାଇଁ ଏହାକୁ କ'ଣ ହାତ-ହତିଆର ଭାବରେ ବ୍ୟବହାର କରାଯାଉଛି ? ରାଜକୋଷରୁ ବିଜ୍ଞାନର ସମୃଦ୍ଧି ପାଇଁ ବିପୁଳ ଅର୍ଥ ବ୍ୟୟ କରାଯାଉଛି । ଏତଦ୍ଦ୍ୱାରା ଅବହେଳିତ ତଥା ଦରିଦ୍ର ଜନସାଧାରଣଙ୍କ ଜୀବନଧାରଣର ମାନରେ କ'ଣ କ୍ରମୋନ୍ନତି ଘଟୁଛି ?

ଏପରି ଅନେକ ପ୍ରଶ୍ନ ଆମ ମନରେ ଉଙ୍କିମାରୁଛି । ଅଜ୍ଞତା ଓ ଭୁଲ୍ ବୁଝାମଣା ଯୋଗୁଁ ଆମେ ବିଜ୍ଞାନର ମହତ୍ତ୍ୱ ଓ ଭୂମିକା ସମ୍ପର୍କରେ ଜାଣି ପାରୁନାହୁଁ କିମ୍ବା ଜାତୀୟ ପ୍ରଗତି ପାଇଁ ଉଦ୍ଦିଷ୍ଟ ବିଜ୍ଞାନାଶ୍ରୟୀ ଯୋଜନାଗୁଡ଼ିକ ସହିତ ନିଜ ନିଜକୁ ଠିକଣା ଭାବରେ ସାମିଲ କରିପାରୁ ନାହୁଁ । ଡକ୍ଟର ଦେବକାନ୍ତ ମିଶ୍ର ଆମେ ବୁଝିପାରିବା ଭଳି ଭାଷାରେ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେଇଛନ୍ତି । ଆଶା କରାଯାଉଛି ଯେ ଆମ ରାଜ୍ୟର ସଂସ୍କୃତିପ୍ରେମୀ ଜନସାଧାରଣ ଏହି ପୁସ୍ତକଟିରୁ ବିଜ୍ଞାନର ତାତ୍ପର୍ଯ୍ୟ ତଥା ଆମ୍ଭମାନଙ୍କ ଦାୟିତ୍ୱ-ବୋଧ ସମ୍ପର୍କରେ ବହୁ ଶିକ୍ଷଣୀୟ ତଥା ଜ୍ଞାତବ୍ୟ ତଥ୍ୟ ପାଇ ପାରିବେ ।

—ପ୍ରକାଶକ—

# ବିଜ୍ଞାନ କାହା ପାଇଁ ?

ରାମ ମିଶ୍ରେ ଚାଷ କାମ ତଦାରଖ କରି ବିଲରୁ ଫେରୁଥିଲେ । ଢାଇ ଲେଉଟାଣି ବେଳ । ସେ ଦେଖିଲେ ଯେ, ଗାଁ ମୁଣ୍ଡରେ ଥିବା ମାଇନର ସ୍କୁଲ ହତାରୁ ଗୋଟିଏ ମଟର ଗାଡ଼ି ବାହାରିଲା । ମିଶ୍ରେ ଭାବିଲେ ଯେ, ବିଦ୍ୟାଳୟର ଆଜି ତ ପୁରସ୍କାର ବିତରଣୀ ଉତ୍ସବ ନୁହେଁ । ବୋଧେ କୌଣସି ବଡ଼ ହାକିମ ସ୍କୁଲ ପରିଦର୍ଶନରେ ଆସିଥିଲେ । ଘରେ ପହଞ୍ଚିବା କ୍ଷଣି ସେ ବଡ଼ ପୁଅ ଶ୍ୟାମକୁ ଡାକି ପକାଇଲେ । ଶ୍ୟାମ ପାଖକୁ ଆସିବାରୁ ସେ ପଚାରିଲେ, "କିରେ ! ଆଜି ତୁମ ସ୍କୁଲକୁ କେଉଁ ବଡ଼ ହାକିମ ଆସିଥିଲେ କି ?"

ଶ୍ୟାମ ଉତ୍ତର ଦେଲା, ହାକିମ କାହିଁକି ଆସିବେ ? ଆଜି ପରା ଆମ ସ୍କୁଲରେ ଜାତୀୟ ବିଜ୍ଞାନ ଦିବସ ପାଳିତ ହେଲା । ଆମ ପ୍ରଧାନ ଶିକ୍ଷକଙ୍କ ନିମନ୍ତ୍ରଣ ରକ୍ଷା କରି ସେହି ଗାଡ଼ିରେ ଦୁଇ ଜଣ ବିଜ୍ଞାନ ଅଧ୍ୟାପକ ଆସିଥିଲେ । ସେମାନେ ଆମ୍ଭମାନଙ୍କୁ ବିଜ୍ଞାନ ଦିବସ ପାଳନ କରାଯିବାର ତାତ୍ପର୍ଯ୍ୟ ସମ୍ପର୍କରେ ବୁଝାଉଥିଲେ ।

ରାମ ମିଶ୍ରେ କହିଲେ, ଆଜି ପର୍ଯ୍ୟନ୍ତ ବିଦ୍ୟାଳୟମାନଙ୍କରେ ସ୍ୱାଧୀନତା ଦିବସ, ଗଣତନ୍ତ୍ର ଦିବସ, ଗୁରୁ ଦିବସ ଓ ଶିଶୁ ଦିବସ ପାଳନ କରାଯାଉଥିଲା । ଏ ବିଜ୍ଞାନ ଦିବସ କଥା ଉଠିଲା କାହିଁକି ?

ସେଇ କଥା ତ ଆଜି ସଭାରେ ଆଲୋଚିତ ହେଲା । ଜଣେ ଅଧ୍ୟାପକ ଆମ୍ଭମାନଙ୍କୁ ବୁଝାଇ ଦେଲେ ଯେ ଆମ ଦେଶ ଭଳି ଗୋଟିଏ ଜନବହୁଳ ଓ ପଲ୍ଲିବହୁଳ ରାଷ୍ଟ୍ରର ପ୍ରଗତି ପାଇଁ ଆମ୍ଭେମାନେ ବିଜ୍ଞାନ ଓ ଟେକ୍‌ନୋଲଜି ଉପରେ ନିର୍ଭର କରିବା ।

ଆମ ଦେଶ ଭଳି ଗୋଟିଏ ବିକାଶଶୀଳ ରାଷ୍ଟ୍ରର ସବୁ ଶ୍ରେଣୀର ଲୋକଙ୍କ ଚାହିଦା ପୂରଣ ପାଇଁ ଓ ଦେଶବାସୀମାନଙ୍କ ଜୀବନଧାରଣର ମାନରେ କ୍ରମୋନ୍ନତି ଘଟାଇବା ପାଇଁ ସାରା ଦେଶରେ ବିଜ୍ଞାନ ଓ ଟେକ୍‌ନୋଲଜି ନିର୍ଭରଶୀଳ ଯୋଜନାଗୁଡ଼ିକୁ ଯଥାବିଧି କାର୍ଯ୍ୟକାରୀ କରାଇବାକୁ ହେବ । ଜନସାଧାରଣଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ସୁଚିନ୍ତିତ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ଫଳରେ ଆମ ଦେଶର ଯଥାର୍ଥ ପ୍ରଗତି ସମ୍ଭବ ହୋଇ ପାରିବ ।

ଶ୍ୟାମ ଆଉ କିଛି କହିବା ପୂର୍ବରୁ ରାମ ମିଶ୍ରେ କହିଲେ, ଆରେ ପୁଅ ! ଏକଥା କ'ଣ ମୁଁ ଜାଣି ନାହିଁ ? ଏ ବିଜ୍ଞାନ ଯୋଗୁଁ ତ ଅସମ୍ଭବ ଘଟଣା ସବୁ ଘଟୁଛି ।

ମଣିଷ ଚନ୍ଦ୍ରପୃଷ୍ଠରେ ପାଦ ପକାଇଲାଣି । ପରମାଣୁ ବୋମାର ବିସ୍ଫୋରଣ ପୃଥିବୀରୁ ଜୀବଜଗତ ଧ୍ୱଂସ କରିଦେବାର ଆଶଙ୍କା ଉପୁଜିଲାଣି । ରାଜଯକ୍ଷ୍ମା, ହଇଜା ଓ ମ୍ୟାଲେରିଆ ପ୍ରଭୃତି ଦୁରାରୋଗ୍ୟ ବ୍ୟାଧିର ପ୍ରକୋପରୁ ମନୁଷ୍ୟ ମୁକ୍ତ ହୋଇପାରୁଛି । ରେଡ଼ିଓ ଓ ଟେଲିଭିଜନ ଜରିଆରେ ସେ ଦେଶ ବିଦେଶର ଖବର ଜାଣି ପାରୁଛି ଓ ଦେଖି ପାରୁଛି । ଆମ ଦେଶରେ ସବୁଜ ବିପ୍ଳବ ଘଟିବା

ପରଠାରୁ ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଆମେ ଅବଶ୍ୟ ଆଉ କାହା ପାଖରେ ହାତପତାଇବା ଦରକାର ହେଉନାହିଁ ।

କେତେ ନୂଆ ନୂଆ ପ୍ରକାରର କଳ କାରଖାନା ବସୁଛି । ନୂଆ ନୂଆ ପ୍ରକାରର ଜିନିଷ ବଜାରକୁ ଆସୁଛି । ବିଜ୍ଞାନର କରାମତି ଆଉ କ'ଣ କାହା ପାଖରେ ଅଛପା ରହୁଛି ? ତୁ ଆଉ କ'ଣ ନୂଆ କହୁଛୁ ? ପୁଣି ବର୍ଷକ ମଧ୍ୟରେ କେବଳ ଗୋଟିଏ ଦିନକୁ ବିଜ୍ଞାନ ଦିବସ ଭାବରେ ପାଳନ କରାଯିବା ଦ୍ୱାରା କ'ଣ ଲାଭ ମିଳିବ ?

ଶ୍ୟାମ ଉତ୍ତର ଦେଲା, ସହରରୁ ଆସିଥିବା ଅଧ୍ୟାପକ ମହୋଦୟ ଆମ୍ଭମାନଙ୍କୁ ଏଇ କଥା ପରିଷ୍କାର ଭାବରେ ବୁଝାଇ ଦେଲେ । ଏଇ ଗୁରୁ ଦିବସଟିକୁ ଆମେ ଗୋଟିଏ ସଂକଳ୍ପ ଦିବସ ଭାବରେ ପାଳନ କରିବା । ଚଳିତ ବର୍ଷଠାରୁ ଏଣିକି ପ୍ରତି ବର୍ଷ ନଭେମ୍ବର ମାସ ୨୮ ତାରିଖ ଦିନ ସାରା ଦେଶରେ ଏହି ଦିବସଟିକୁ 'ଜାତୀୟ ବିଜ୍ଞାନ ଦିବସ' ରୂପେ ପାଳନ କରାଯିବ ।

ଆମ ଦେଶର ଚନ୍ଦ୍ରଶେଖର ଭେଙ୍କଟ ରମଣ ନାମକ ଜଣେ ବୈଜ୍ଞାନିକ ଏହି ସ୍ମରଣୀୟ ଦିବସରେ ଗୋଟିଏ ମହନୀୟ ଆବିଷ୍କାରକୁ ନିଜ ପ୍ରଗାଢ଼ ସାଧନା ବଳରେ ସଫଳ ଭାବରେ ସମ୍ପାଦନ କରିଥିଲେ । ବର୍ତ୍ତମାନ ଏହାକୁ ତାଙ୍କ ନାମାନୁସାରେ 'ରମଣ ପ୍ରଭାବ' ନାମରେ ଅଭିହିତ କରାଯାଉଛି । ଏହି କୃତିତ୍ୱ ପାଇଁ ସେ ୧୯୩୦ ମସିହାରେ ନୋବେଲ ପୁରସ୍କାର ବିଜେତାର ଗୌରବ ଅର୍ଜନ କରିଥିଲେ । ଆମ ଦେଶର ବିଜ୍ଞାନାଗାରରେ ଗବେଷଣା



( ଚନ୍ଦ୍ରଶେଖର ଭେଙ୍କଟ ରମଣ )

ଚଳାଇ ତାଙ୍କ ବ୍ୟତୀତ ଆଉ କେହି ନୋବେଲ ପୁରସ୍କାର ବିଜେତା ହେବାର ଗୌରବ ଅର୍ଜନ କରିନାହାନ୍ତି ।

ଆମ ଦେଶ ପରାଧୀନ ଥିବା ଅବସ୍ଥାରେ ବୈଜ୍ଞାନିକ ଗବେଷଣା ଚଳାଇବା ପାଇଁ ପରିବେଶ ଅତ୍ୟନ୍ତ ପ୍ରତିକୂଳ ହୋଇଥିଲା । ମାତ୍ର ରମଣ କେବଳ ନିଜ ପ୍ରତିଭା, ଦୃଢ଼ ଆତ୍ମ ପ୍ରତ୍ୟୟ ଓ ନିରବଚ୍ଛିନ୍ନ ସାଧନା ବଳରେ ଉଚ୍ଚକୋଟୀର ଗବେଷଣା ଚଳାଇ ସାରା ପୃଥିବୀରେ ନିଜର ତଥା ନିଜ ଦେଶର ସମ୍ମାନ ବଢାଇବାକୁ ସମର୍ଥ ହୋଇଥିଲେ ।

ତାଙ୍କ ଭଳି ଜଣେ ନିରଳସ, ସଚ୍ଚୋଟ ଓ ନିଷ୍ଠାପର ଜ୍ଞାନବୀରଙ୍କୁ ଆମେ ଜାତୀୟ ପ୍ରତୀକ ଭାବରେ ଗ୍ରହଣ କରିଛୁ । ତାଙ୍କ ଅକ୍ଷୟ କୀର୍ତ୍ତି ଓ ଜୀବନାଦର୍ଶ ଆମ ଦେଶର ଛାତ୍ରଛାତ୍ରୀ ଓ କାର୍ଯ୍ୟକ୍ଷମ ଯୁବକ ଯୁବତୀମାନଙ୍କୁ ବିଜ୍ଞାନ ଓ ଟେକ୍‌ନୋଲଜିର ସମୃଦ୍ଧି ସାଧନ ଦିଗରେ ମନ ପ୍ରାଣ ଢାଳି ଦେବାକୁ ଅପରିମିତ ଉତ୍ସାହ ଓ କର୍ମ-ପ୍ରେରଣା ଯୋଗାଇ ପାରିବ । ଜାତୀୟ ସରକାର ଏପରି ଭାବନାର ବଶବର୍ତ୍ତୀ ହୋଇ ସାରା ଦେଶରେ 'ଜାତୀୟ ବିଜ୍ଞାନ ଦିବସ' ପାଳନ କରାଯିବାର ଗୋଟିଏ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ରାମ ମିଶ୍ରେ ଚାହା ପିଉ ପିଉ ପୁଅକୁ କହିଲେ, ନିଷ୍ପତ୍ତିଟା ବେଶ୍ ଉତ୍ତମ ହୋଇଛି । ମାତ୍ର ଖାଲି ବିଜ୍ଞାନର ମହିମା ପ୍ରଚାର କଲେ ଆମର କ'ଣ ଲାଭ ହେବ ? ବିଜ୍ଞାନ ଯୋଗୁଁ କେତେ ଅଳିବାଲି ଲୋକଙ୍କ ହାତ ଚକ୍‌କଣ ହେଉଛି । ମାରିନେବେ ମହାପାତ୍ରେ, ଚାହିଁଥିବେ ଜଳକା !

ଆରେ ! ଆମେ ରାଜକୋଷକୁ ଟିକସ ଦେଉଛୁ । ଜନସାଧାରଣଙ୍କ ପଇସା ବିଜ୍ଞାନର ସମୃଦ୍ଧି ପାଇଁ ନିୟୋଜିତ ହେଉଛି । ମାତ୍ର ସହରାଞ୍ଚଳ ଓ ଶିଳ୍ପାଞ୍ଚଳର ଲୋକେ ବେଶି ସୁବିଧା ମାରି ନେଉଛନ୍ତି । ଆମ ମଫସଲ ଅଞ୍ଚଳର ବଡ଼ ବଡ଼ ଚାଷୀ ଓ ମହାଜନମାନେ ଏହାର ଫଳ ଭୋଗ କରୁଛନ୍ତି । ଗରିବ ଲୋକଙ୍କୁ ଏଥିରୁ କ'ଣ ମିଳୁଛି ?

ବାପାଙ୍କୁ ଆଉ କିଛି କହିବାକୁ ନ ଦେଇ ଶ୍ୟାମ ଉତ୍ତର ଦେଲା, ଜଣେ ଅଧ୍ୟାପକ ତ ଠିକ୍ ଆପଣଙ୍କ ଭଳି ମତ ଦେଉଥିଲେ । ସେ କହିଲେ ଯେ, ସୁଦୀର୍ଘ କାଳ ବ୍ୟାପୀ ଆମ ଦେଶ ପରାଧୀନ ଥିବା ଯୋଗୁଁ ଆମ ଦେଶର ଜନସାଧାରଣଙ୍କ କଲ୍ୟାଣ ପାଇଁ ବିଜ୍ଞାନ ଓ ଟେକ୍‌ନୋଲଜିର ବିନିଯୋଗ ସମ୍ଭବ ହୋଇ ନାହିଁ ।

ମାତ୍ର ସ୍ୱାଧୀନତା ପ୍ରାପ୍ତି ପରଠାରୁ ଆମ ଦେଶର ପ୍ରଥମ ପ୍ରଧାନ ମନ୍ତ୍ରୀ ସ୍ୱର୍ଗୀୟ ପଣ୍ଡିତ ଜବାହରଲାଲ ନେହେରୁ ଏ ଦେଶରେ ବିଜ୍ଞାନ ଓ ଟେକ୍‌ନୋଲଜିର ମୂଳଦୁଆକୁ ମଜବୁତ କରିବା ପାଇଁ ମନ ପ୍ରାଣ ଢାଳି ଦେଇଥିଲେ ।

ସେ ଜାଣିଥିଲେ ଯେ ଆମ ଦେଶରୁ ଅଜ୍ଞାନ, ଅନ୍ଧବିଶ୍ୱାସ ଓ ଦାରିଦ୍ର୍ୟ ଦୂର କରିବା ପାଇଁ ବିଜ୍ଞାନ ଓ ଟେକ୍‌ନୋଲଜି ଉପରେ ନିର୍ଭର କରିବାକୁ ହିଁ ହେବ । ବିଜ୍ଞାନକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇ ଦେବାକୁ ପଡ଼ିବ । ଏଥିପାଇଁ ସର୍ବପ୍ରଥମେ ସାରା ଦେଶରେ ଗୋଟିଏ ବୈଜ୍ଞାନିକ ମିଜାଜ୍ ସୃଷ୍ଟି କରିବା ପ୍ରତି ସେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ।



( ଜବାହାରଲାଲ ନେହେରୁ )

ମିଶ୍ରେ ଆଖି ଓର୍‌ଚି ପଚ୍ଚାରଲେ, "ହଇରେ ପୁଅ ! ବୈଜ୍ଞାନିକ ମଜାକ୍ ପୁଣି କ'ଣ ?"

ଶ୍ୟାମ ପ୍ରଥମେ ଟିକିଏ ହଡ଼ବଡ଼େଇ ଗଲା । ଅବଶ୍ୟ ସେ କଥାଟା ଭଲ ଭାବରେ ବୁଝିଥିଲା । ତେଣୁ ବାପାଙ୍କ ପ୍ରଶ୍ନର ଉତ୍ତର ଦେବା ଉଦ୍ଦେଶ୍ୟରେ କହିଲା, ଏଇଟା ହିଁ ଅସଲ ସମସ୍ୟା । ଲୋକେ ବିଜ୍ଞାନର ରୂପକୁ ଭଲ ଭାବରେ ବୁଝି-ନାହାନ୍ତି । ସେମାନେ ବିଜ୍ଞାନକୁ ଗୋଟିଏ ଯାଦୁକରୀ ବିଦ୍ୟା ଭାବରେ ବିଚାର କରୁଛନ୍ତି ।

ସୁଇଚ୍ ଟିପିଦେଲେ ବିଜୁଳୀ ବତୀ ଜଳୁଛି, ପଙ୍ଖା ବୁଲୁଛି, ରେଡ଼ିଓ ବାଜୁଛି, ପମ୍ପ ପାଣି ଉଠାଉଛି, ଟେଲିଭିଜନର ପରଦା ଉପରେ ରଙ୍ଗ ବେରଙ୍ଗୀ ଚିତ୍ର ଝଲସୁଛି । ଆମେ ବୁଝିବାର କଥା ଯେ, ଆମ ଦେଶର ଜନସାଧାରଣ ଯେ ପର୍ଯ୍ୟନ୍ତ ବିଜ୍ଞାନକୁ ମ୍ୟାଜିକ୍ ଭାବରେ ବିଚାର କରୁଥିବେ, ତଦବଧି ଏ ଦେଶର ପ୍ରତିପତ୍ତିସମ୍ପନ୍ନ ତଥା ସୁବିଧାବାଦୀ ଲୋକମାନେ ବିଜ୍ଞାନର ସୁଫଳଗୁଡ଼ିକୁ ନିଜ ନିଜର ଏକଚାଟିଆ ଅଧିକାର ଭାବରେ ଉପଭୋଗ କରିବାର ସୁବିଧା ପାଉଥିବେ ।

ଆମ୍ଭମାନଙ୍କ ଅଜ୍ଞତା, କୁସଂସ୍କାର ଓ ଅନ୍ଧବିଶ୍ୱାସ ଯୋଗୁଁ ସେମାନେ ଶୋଷଣ-ପ୍ରବଣ ମନୋବୃତ୍ତି ବଳରେ ବିଜ୍ଞାନ ଓ ଟେକ୍‌ନୋଲଜିର ଅବଦାନଗୁଡ଼ିକୁ ଆପଣାର କରିନେବେ । ମୁଁ ବୁଝିପାରୁଛି ଯେ ଅତୀତରେ ଯେଉଁ ସଭ୍ୟତା ଏପରି ବିଷମ ପରିସ୍ଥିତିର ସମ୍ମୁଖୀନ ହୋଇଛି, ତାହାର ଅବକ୍ଷୟ ବା ବିଲୟର ପଥ ତ୍ୱରାନ୍ୱିତ ହୋଇଛି ।

ଶ୍ୟାମ ବାପାଙ୍କୁ ବିଜ୍ଞାନ ଓ ସମାଜ ସମ୍ପର୍କରେ ଏପରି ବୁଝାଉଥିବା ବେଳେ ସ୍କୁଲର ଗଣିତ ଶିକ୍ଷକ କବାଟ ଆଢ଼ୁଆଳରେ ରହି ତା' କଥା ଶୁଣୁଥିଲେ । ସେ ପ୍ରତିଦିନ କାମ ସାରି ଘରକୁ ଫେରିବା ବାଟରେ ରାମ ମିଶ୍ରଙ୍କ ଘରେ ଟିକିଏ ଚାହା ପିଅନ୍ତି ଓ ପରିବାରର ବନ୍ଧୁ ଭାବରେ ଶ୍ୟାମକୁ ପାଠ ବତାଇ ଦିଅନ୍ତି ।

ଶ୍ୟାମର ବାପା ଗରିବ, ମାତ୍ର ସେ ଜଣେ ବନ୍ଧୁପ୍ରେମୀ ବ୍ୟକ୍ତି । ଶିକ୍ଷକଙ୍କୁ, ସେ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରନ୍ତି । ପୁଣି ଶ୍ୟାମ ଜଣେ ମେଧାବୀ ଛାତ୍ର । ଏ ବର୍ଷ ତା' ପାଇଁ ସ୍କୁଲ ମାଇନର ବୃତ୍ତି ପାଇବାର ଆଶା ରହିଛି । ଏଣୁ ଶ୍ୟାମକୁ ପାଠ ପଢ଼ାରେ ସାହାଯ୍ୟ କରିବାକୁ ଶିକ୍ଷକ ନିଜର ଗୋଟିଏ କର୍ତ୍ତବ୍ୟ ଭାବରେ ବିଚାର କରନ୍ତି ।

ଶ୍ୟାମ ଯେଉଁ କଥା ତା' ବାପାଙ୍କୁ ଶୁଣାଉଥିଲା, ତାହାକୁ ଶୁଣିବା କ୍ଷଣି ଶିକ୍ଷକ ମହୋଦୟ ବିଶେଷ ଆନନ୍ଦିତ ହେଲେ । ଶ୍ୟାମ ଆଉ କିଛି କହିବା ପୂର୍ବରୁ କବାଟ ଫାଙ୍କରେ ତାଙ୍କ ମୁହଁ ଦିଶିଗଲା ।

ରାମ ମିଶ୍ରେ କହିଲେ, ମାଷ୍ଟ୍ରେ ! ସ୍କୁଲକୁ ଯେଉଁ ବାବୁମାନେ ଆସିଥିଲେ, ସେମାନେ ପିଲାଙ୍କୁ ବେଶ୍ ଭଲ କଥା ବୁଝାଇଛନ୍ତି । ଯୁଗୋପଯୋଗୀ ଓ ଦେଶପଯୋଗୀ ସମସ୍ୟା ସହିତ ପିଲାମାନଙ୍କୁ ପରିଚିତ କରାଇବା ଦ୍ୱାରା ହିଁ ସେମାନଙ୍କ ଆଖି ଖୋଲିଯିବ । ଆପଣମାନଙ୍କ ଆଶୀର୍ବାଦ ଯୋଗୁଁ ଶ୍ୟାମ ଆଜି କେତେ କଥା ଶିଖିଛି । ତା' ମୁହଁରୁ ବିଜ୍ଞାନର କରାମତି ସଂପର୍କରେ ମୁଁ ଯାହା ଶୁଣୁଛି, ମତେ ଭାରି ଭଲ ଲାଗୁଛି ।

ମାଷ୍ଟ୍ରେ କହିଲେ, ଶ୍ୟାମ ଯେ ଏତେ ପ୍ରାଞ୍ଜଳ ଭାବରେ ଅଧ୍ୟାପକମାନଙ୍କ ମନ୍ତବ୍ୟକୁ ବୁଝିପାରୁଛି, ସେଥିପାଇଁ ମୁଁ ଭାରି ଖୁସି । ଆଚ୍ଛା ଶ୍ୟାମ ! ତୁ ବାପାଙ୍କୁ ବିଜ୍ଞାନର ରୂପ ସଂପର୍କରେ ବୁଝାଉଥିଲୁ । ମତେ କହିଲୁ ଦେଖି ବିଜ୍ଞାନ କହିଲେ ତୁ ମୋଟାମୋଟି କ'ଣ ବୁଝୁଛୁ ?

ଶ୍ୟାମ ତା' ବାପାଙ୍କୁ ଯେତେ ଖୁସିରେ ବୁଝାଉଥିଲା, ମାଷ୍ଟ୍ର ମହୋଦୟଙ୍କ ସମ୍ମୁଖରେ ସେତେ ସ୍ୱଚ୍ଛଳ ଭାବରେ କଥାଗୁଡ଼ିକୁ କହିଦେବା ତା' ପକ୍ଷରେ ସମ୍ଭବ ହେଲା ନାହିଁ । ସେ ଅତି ସଂଯତ ଭାବରେ କହିଲା, ସାର୍ ! ଯେଉଁ ପ୍ରକାର କାମ କରିବା ଫଳରେ ମନୁଷ୍ୟ ନିଜ କୌତୂହଳ ମେଣ୍ଟାଇ-ପାରୁଛି, ତାହା ହିଁ ବିଜ୍ଞାନ । ପ୍ରକୃତିର ବିଚିତ୍ର ଦୃଶ୍ୟଗୁଡ଼ିକର କାରଣ ସଂପର୍କରେ ଜାଣିବା ପାଇଁ ସେ ନିଜ ସୃଷ୍ଟିଶୀଳ ପ୍ରତିଭାର ସଦୁପଯୋଗ କରୁଛି ।

ବୈଜ୍ଞାନିକ ମହୋଦୟ କହୁଥିଲେ ଯେ, ସାର୍ ସି· ଭି· ରମଣ ଜାହାଜରେ ବିଦେଶ ଯାତ୍ରା କରୁଥିବା ବେଳେ ଭୂମଧ୍ୟସାଗରର ସୁନୀଳ ଜଳରାଶୀ ତାଙ୍କୁ ବିମୋହିତ କରିଥିଲା । ଏ ପାଣିର ରଙ୍ଗ କାହିଁକି ଏତେ ନେଳିଆ ଦିଶୁଛି ? ସୂର୍ଯ୍ୟାଲୋକ କେଉଁ କାରଣ ଯୋଗୁଁ କିପରି ଭାବରେ ବିଚ୍ଛୁରିତ ହେବା ଯୋଗୁଁ ପାଣିର ରଙ୍ଗ ଗାଢ଼ ନୀଳ ଦେଖା-ଯାଉଛି ? ଏହି ପ୍ରଶ୍ନଟିର ଉତ୍ତର ପାଇବା ପାଇଁ ତାଙ୍କ ମନରେ କୌତୂହଳ ସୃଷ୍ଟି ହେଲା ।

ସେ ଆଲୋକର ପ୍ରକୃତ ସମ୍ପର୍କରେ ଆଲବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କ ଦ୍ୱାରା ସୂଚୀତ କ୍ୱାଣ୍ଟମ ତତ୍ତ୍ୱାଶ୍ରୟୀ ସ୍ପଷ୍ଟୀକରଣକୁ ବିଚକ୍ଷଣ ଭାବରେ ପ୍ରୟୋଗ କଲେ ।

ସେ ବୁଝିପାରିଲେ ଯେ ଆଲୋକ ହେଉଛି ଫୋଟନ କଣିକା-ଗୁଡ଼ିକର ସମାହାର । ଜଳ ପୃଷ୍ଠରେ ଆପତିତ ଫୋଟନ କଣିକାଗୁଡ଼ିକ ପୃଷ୍ଠଦେଶସ୍ଥିତ ଜଳ ଅଣୁଗୁଡ଼ିକ ସହିତ ସଂଘାତ ସୃଷ୍ଟି କରି ପ୍ରତିଫଳିତ ହୋଇଯିବାବେଳେ ଫୋଟନମାନଙ୍କ କମ୍ପନହାରରେ ପରିବର୍ତ୍ତନ ଘଟେ ।

ଏପରି ଏକ ତାତ୍ତ୍ୱିକ ଧାରଣାର ବଶବର୍ତ୍ତୀ ହୋଇ ସେ ଅଭିଜ୍ଞିୟାତ୍ମକ ଗବେଷଣା ଚଳାଇଲେ । ଅଭିଜ୍ଞିୟାତ୍ମକ ଗବେଷଣାର ଫଳକୁ ବିଚାରକୁ ନେଇ ସେ ଆଲୋକର ବିଚ୍ଛୁରଣ ସମ୍ବନ୍ଧରେ ଯେଉଁ କ୍ୱାଣ୍ଟମ୍ ତଥ୍ୟାଶ୍ରୟୀ ତତ୍ତ୍ୱଟିକୁ ପ୍ରତିଷ୍ଠା କଲେ, ତାହା ହିଁ ରମଣ ପ୍ରଭାବ ।

ମାଷ୍ଟ୍ରେ ଅତି ଖୁସିରେ ଶ୍ୟାମର ପିଠି ଥାପୁଡ଼େଇ କହିଲେ, ତୁ ବଡ଼ ହେଲେ ନିଶ୍ଚୟ ଜଣେ ବୈଜ୍ଞାନିକ ହେବୁ । ରମଣ ପ୍ରଭାବର ସ୍ଥୂଳ ଧାରଣାଟିକୁ ତୁ ଭଲ ଭାବରେ ବୁଝି-ପାରିଛୁ । ମୁଁ ଏହା ଆଦୌ ଆଶା କରି ନଥିଲି ।

ମାଷ୍ଟ୍ର ମହୋଦୟ ଶ୍ୟାମର ବକ୍ତବ୍ୟକୁ ଆହୁରି ସ୍ପଷ୍ଟ କରିଦେବା ଉଦ୍ଦେଶ୍ୟରେ ପୁଣି କହିଲେ, ବୁଝିଲୁ ଶ୍ୟାମ ! ପର୍ଯ୍ୟବେକ୍ଷଣ ମନୁଷ୍ୟ ମନରେ ଭାବାବେଗ ସୃଷ୍ଟି କରେ । ସେ କୌଣସି ପର୍ଯ୍ୟବେକ୍ଷଣର ମାଧୁର୍ଯ୍ୟ ଉପଭୋଗ କରି ତାହାର ସୌନ୍ଦର୍ଯ୍ୟ ବା ସ୍ୱାତନ୍ତ୍ର୍ୟକୁ ନିଜ କଳ୍ପନାପ୍ରବଣତା ଓ ଭାବ ପ୍ରକାଶର ବିଚକ୍ଷଣ ପରିପାଟୀ ବଳରେ ବ୍ୟକ୍ତ କରିବା ଫଳରେ କବିତା ସୃଷ୍ଟି ହୁଏ ।

ମାତ୍ର ଯେଉଁ ସ୍ତାବକମାନେ ପର୍ଯ୍ୟବେକ୍ଷଣଟିର କାରଣ ସମ୍ପର୍କରେ କାର୍ଯ୍ୟ-କାରଣ-ସଙ୍ଗତ ସ୍ପଷ୍ଟୀକରଣ ପାଇବାକୁ ଚାହାଁନ୍ତି ଓ ସେଥିପାଇଁ ମୁଣ୍ଡ ଖେଳାନ୍ତି, ସେମାନଙ୍କୁ ବୈଜ୍ଞାନିକ କୁହାଯାଏ ।

ଜଣେ ବୈଜ୍ଞାନିକଙ୍କ ମନରେ କୌଣସି ଦୃଶ୍ୟ ଯଦି କୌତୂହଳ ସୃଷ୍ଟି କରେ, ତାହାହେଲେ ସେ ପ୍ରଥମେ ତାହାକୁ ବୁଝିବା ଉଦ୍ଦେଶ୍ୟରେ ଗୋଟିଏ ଉପକଳ୍ପ ପ୍ରତିଷ୍ଠା କରନ୍ତି ।

ଏହି ଉପକଳ୍ପଟିକୁ ସେ ତାତ୍ତ୍ୱିକ ପଦ୍ଧତି ଅବଲମ୍ବନରେ ବା ଅଭିଜ୍ଞତା ଜରିଆରେ ତର୍କ ସିଦ୍ଧ ମାର୍ଗରେ ଉପସ୍ଥାପନା କରନ୍ତି । ସୁପ୍ରତିଷ୍ଠିତ ତତ୍ତ୍ୱଟିର ସତ୍ୟାପନ ସମ୍ପର୍କରେ ତ୍ରୁଟି ଦର୍ଶାଇଦେବା ସମ୍ପର୍କରେ ସେ ଦିଗ୍ ଦର୍ଶନ ପ୍ରଦାନ କରନ୍ତି । ବିଭିନ୍ନ ସମସ୍ୟାର ସମାଧାନ ଉଦ୍ଦେଶ୍ୟରେ ତତ୍ତ୍ୱଟିର ସମ୍ଭାବ୍ୟ ଉପଯୋଗ ସମ୍ପର୍କରେ ସେ ସୂଚନା ଦିଅନ୍ତି । ସୁପ୍ରତିଷ୍ଠିତ ତତ୍ତ୍ୱ ବା ଅଭିନବ ଆବିଷ୍କାରଟିକୁ ସେ ବିଜ୍ଞାନ-ପତ୍ରିକାରେ ଯଥାଶୀଘ୍ର ପ୍ରକାଶ କରନ୍ତି ।

ସମସାମୟିକ ବୈଜ୍ଞାନିକମାନେ ସଦ୍ୟ ପ୍ରତିଷ୍ଠିତ ତତ୍ତ୍ୱଟିର ସତ୍ୟତାକୁ ପୁନଃ ପୁନଃ ପରୀକ୍ଷା କରନ୍ତି । ଯଦି ଏହି ତତ୍ତ୍ୱଟି ଜଣାଥିବା ସବୁ ତତ୍ତ୍ୱ ତୁଳନାରେ ଅଧିକ ତର୍କସିଦ୍ଧ ଜଣାପଡ଼େ ତଥା ଏହା କେତେକ ଅସମାହିତ ସମସ୍ୟାର ସମାଧାନ ଦିଗରେ ସହାୟକ ହୁଏ, ତାହାହେଲେ ବୈଜ୍ଞାନିକ-

ମାନେ ନିର୍ବିବାଦରେ ତତ୍ତ୍ୱଟିକୁ ବିଜ୍ଞାନର ଅନ୍ତର୍ଭୁକ୍ତ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।

ଶ୍ୟାମ କହିଲା, ରମଣ ଠିକ୍ ଏ ପ୍ରକାର ବୈଜ୍ଞାନିକ ପଦ୍ଧତିର ଅନୁଗାମୀ ହୋଇଥିଲେ ।

ମାଷ୍ଟ୍ରେ କହିଲେ, ରମଣଙ୍କ ଅବଦାନକୁ ମଧ୍ୟ ଆଲୋକର ପ୍ରକୃତି ସମ୍ପର୍କରେ ସର୍ବଶେଷ ସିଦ୍ଧାନ୍ତ ଭାବରେ ଗ୍ରହଣ କରିନେବା ଠିକ୍ ହେବ ନାହିଁ । ବିଜ୍ଞାନ ଏକ ଅନ୍ତହୀନ ପ୍ରକ୍ରିୟା । ଏହା ଆପେକ୍ଷିକ ସତ୍ୟ ହିଁ ଘୋଷଣା କରେ ।

ବିଜ୍ଞାନର ଏକ ଅବଦାନକୁ କୌଣସି ଏକ ସମୟରେ ସର୍ବବାଦୀସମ୍ମତ ସତ୍ୟ ଭାବରେ ଗ୍ରହଣ କରାଯାଏ, ମାତ୍ର ପରବର୍ତ୍ତୀ କାଳରେ ତାହାଠାରୁ ଉନ୍ନତ ଧରଣର ତତ୍ତ୍ୱଟିଏ ଆବିଷ୍କୃତ ହୋଇଯିବା ପରେ ପୁରୁଣା ତତ୍ତ୍ୱଟିକୁ ପରିହାର କରାଯାଏ । ଏପରି ଭାବରେ କାଳକ୍ରମେ ଘଷି ମାଜି ବୈଜ୍ଞାନିକମାନେ ତତ୍ତ୍ୱଗୁଡ଼ିକର ଗୁଣାତ୍ମକ ମାନରେ ପରିବର୍ତ୍ତନ ଘଟାଇ ପାରନ୍ତି ।

ବୈଜ୍ଞାନିକମାନେ ଘୋଷଣା କରିଥିଲେ ଯେ ଆଲୋକ ତରଙ୍ଗ ପ୍ରକୃତି ଧାରଣ କରିଛି । ଅବଶ୍ୟ ପୂର୍ବରୁ ସାର୍ ଆଇଜାକ୍ ନିଉଟନ ଆଲୋକର କଣିକା ପ୍ରକୃତି ସମ୍ପର୍କରେ ସୂଚନା ପ୍ରଦାନ କରିଥିଲେ ହେଁ କେତେକ ଦୃଶ୍ୟକୁ କଣିକା ପ୍ରକୃତି ଅବଲମ୍ବନରେ ବୁଝାଇ ଦେବା ସମ୍ଭବ ନ ହେବାରୁ ଆଲୋକର ତରଙ୍ଗ ପ୍ରକୃତିକୁ ହିଁ ତାହାର ପ୍ରକୃତ ରୂପ ଭାବରେ ବିଚାର କରାଗଲା ।

ବିଂଶ ଶତାବ୍ଦୀରେ ଆଲବର୍ଟ ଆଇନ୍‌ଷ୍ଟାଇନ୍ ପୁଣି ଘୋଷଣା କଲେ ଯେ ଆଲୋକ ଫୋଟନ ନାମଧେୟ କଣିକାମାନଙ୍କ ସମାହାରରେ ଗଠିତ ହୋଇଛି । ଏଗୁଡ଼ିକ ସବୁବେଳେ ଆଲୋକର ବେଗ ସହ ସମାନ ବେଗରେ ଧାବମାନ ହୁଅନ୍ତି । ସେ ପୁଣି ଜଣାଇଦେଲେ ଯେ ଏହି ପ୍ରକୃତି ଯୋଗୁଁ ହିଁ ଆଲୋକ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ଦୃଶ୍ୟ ସୃଷ୍ଟି କରୁଛି । ଶେଷୋକ୍ତ ଦୃଶ୍ୟଗୁଡ଼ିକୁ ମଧ୍ୟ ଆଲୋକର ତରଙ୍ଗ ପ୍ରକୃତି ଅବଲମ୍ବନରେ ବୁଝାଇଦେବା ସମ୍ଭବ ହେଲା ନାହିଁ ।

ଏଣୁ ବର୍ତ୍ତମାନ ବୈଜ୍ଞାନିକମାନେ ବିଶ୍ୱାସ କରୁଛନ୍ତି ଯେ ଆଲୋକ ଦ୍ୱୈତ ପ୍ରକୃତି ସଂପନ୍ନ ହୋଇଛି । କେତେକ ଦୃଶ୍ୟକୁ ତାହାର ତରଙ୍ଗ ପ୍ରକୃତି ଅବଲମ୍ବନରେ ଏବଂ ଆଉ କେତେକ ଦୃଶ୍ୟକୁ ତାହାର କଣିକା ପ୍ରକୃତି ଅବଲମ୍ବନରେ ବୁଝାଇଦେବା ସମ୍ଭବ ହେଉଛି ।

ପରବର୍ତ୍ତୀ କାଳରେ ସମ୍ଭବତଃ ଆଲୋକର ପ୍ରକୃତି ସମ୍ବନ୍ଧରେ ଆହୁରି ପ୍ରାଞ୍ଜଳ ସ୍ପଷ୍ଟୀକରଣ ଯୋଗାଇ ପାରୁଥିବା ତତ୍ତ୍ୱ ଉଦ୍ଭାବିତ ହେବ—ଏପରି ବିଶ୍ୱାସ ପୋଷଣ କରିବା ଅବାନ୍ତର ବୋଧ ହେଉନାହିଁ । ବିଜ୍ଞାନର ପ୍ରତ୍ୟେକ ବିଭାଗ ଏପରି ଭାବରେ ହିଁ ସମୃଦ୍ଧ ହୋଇଛି ।

ରାମ ମିଶ୍ର ଜଣେ ଭଲ ଜ୍ୟୋତିଷ । ସେ ମନ ଦେଇ ମାଷ୍ଟ୍ରଙ୍କ କଥା ଶୁଣୁଥିଲେ । ସେ ମାଷ୍ଟ୍ର ମହୋଦୟଙ୍କ କଥାର ମର୍ମ ବୁଝିପାରିଲେ । ସେ କହିଲେ, ନିଜେ ଚିନ୍ତାକରି ପାରୁଥିବା ମଣିଷ ଜାତିର ସୃଷ୍ଟି ସମ୍ଭବ ହେବା ପରଠାରୁ କୌତୂହଳୀ ମଣିଷ ଆକାଶ ଆଡ଼କୁ ଦୃଷ୍ଟିପାତ କରୁଛି ।

ମହାକାଶରେ ସ୍ଥାପିତ ଅସଂଖ୍ୟ ଗ୍ରହ, ଉପଗ୍ରହ, ନକ୍ଷତ୍ର ପ୍ରଭୃତି ବସ୍ତୁପିଣ୍ଡଗୁଡ଼ିକର ପ୍ରକୃତି ଓ ଗତିବିଧି ସମ୍ପର୍କରେ ଜାଣିବା ପାଇଁ ତଥା ପୃଥିବୀ ଉପରେ ସେଗୁଡ଼ିକର ପ୍ରଭାବ ସମ୍ପର୍କରେ ଅବଗତ ହେବା ପାଇଁ ସେ କେଉଁ ଆଦିମ କାଳରୁ ବୁଦ୍ଧି ଖଟାଉଛନ୍ତି ।

ଆମ ଦେଶର ଭାବୁକମାନେ ଏପରି ମନୋନିବେଶ ଫଳରେ ଜ୍ୟୋତିଷ ଶାସ୍ତ୍ରର ସମୃଦ୍ଧି ସାଧନ କରୁଛନ୍ତି । ଆର୍ଯ୍ୟଭଟ୍ଟ, ବରାହମିହିର, ଭାସ୍କରାଚାର୍ଯ୍ୟ ଓ ସାମନ୍ତ-ଚନ୍ଦ୍ରଶେଖର ପ୍ରଭୃତି ମହାମତି ଗଣିତଜ୍ଞ ଓ ଭାବୁକମାନେ ଏହି ବିଚିତ୍ର ବସ୍ତୁପିଣ୍ଡଗୁଡ଼ିକର ଗତିବିଧିକୁ ବିଚାରକୁ ନେଇ ଜ୍ୟୋତିଷ ଶାସ୍ତ୍ରର ସମୃଦ୍ଧି ଘଟାଇଛନ୍ତି ।

ବିଭିନ୍ନ ଦେଶରେ ଜ୍ୟୋତିଷ ଶାସ୍ତ୍ରର ଚର୍ଚ୍ଚା ଚାଲିଥିବା ବେଳେ ବିଜ୍ଞାନର କ୍ରମୋନ୍ନତି ସାଧିତ ହୋଇଛି । ଆଜି ଜ୍ୟୋତିର୍ବିଜ୍ଞାନ ବା ଜ୍ୟୋତିଃପଦାର୍ଥ ବିଜ୍ଞାନର ବିକାଶ ଯେପରି ଚରମ ଅବସ୍ଥାରେ ଉପନୀତ ହୋଇଛି, ତାହା କେବଳ ବିଭିନ୍ନ ଦେଶର ବହୁ ସୁନାମଧନ୍ୟ ବୈଜ୍ଞାନିକ-ମାନଙ୍କ ପ୍ରଗାଢ଼ ତପସ୍ୟାର ଫଳ ।

ମାଷ୍ଟ୍ରେ କହିଲେ, ମିତ୍ରେ ! କଥାଟାକୁ ଆପଣ ଠିକ୍ ବୁଝିଛନ୍ତି । ବିଜ୍ଞାନର ନିରବଚ୍ଛିନ୍ନ ଜୟଯାତ୍ରା ସହ ତାଳ ମିଳାଇ ଟେକ୍‌ନୋଲଜିର ମଧ୍ୟ କ୍ରମୋନ୍ନତି ଘଟିଛି । ମହାକାଶରେ ସ୍ଥାପିତ ବସ୍ତୁପିଣ୍ଡଗୁଡ଼ିକୁ ସ୍ପଷ୍ଟ ଭାବରେ ଦେଖିବା ପାଇଁ, ସେମାନଙ୍କୁ ଗଠନ କରିଥିବା ମୌଳିକ ଉପାଦାନଗୁଡ଼ିକୁ ଚିହ୍ନିବା ପାଇଁ ଏବଂ ସେମାନଙ୍କ ଗତିବିଧି ଓ ପ୍ରକୃତି ସଂପର୍କରେ ନିର୍ଭରଯୋଗ୍ୟ ତଥ୍ୟ ସଂଗ୍ରହ କରିବା

ପାଇଁ ଏଇ ମଣିଷ ବର୍ତ୍ତମାନ ବିଚକ୍ଷଣ ଯନ୍ତ୍ରଗୁଡ଼ିକୁ ବ୍ୟବହାର କରୁଛି ।

ବିଭିନ୍ନ ପ୍ରକାର ଦୂରବୀକ୍ଷଣ ଯନ୍ତ୍ର, ବିଭିନ୍ନ ପ୍ରକାର ବିଦ୍ୟୁତ୍-ଚୁମ୍ବକୀୟ ରଶ୍ମିଗୁଡ଼ିକ ଦ୍ୱାରା କାର୍ଯ୍ୟକ୍ଷମ ହୋଇ ପାରୁଥିବା କ୍ୟାମେରା ମହାକାଶଯାନ ଓ କମ୍ପ୍ୟୁଟର୍ ପ୍ରଭୃତି ଯନ୍ତ୍ରଗୁଡ଼ିକୁ ବ୍ୟବହାର କରି ସେ ବସ୍ତୁପିଣ୍ଡମାନଙ୍କ ସମ୍ବନ୍ଧରେ ଯେଉଁ ତଥ୍ୟଗୁଡ଼ିକୁ ସଂଗ୍ରହ କରୁଛି, ସେଗୁଡ଼ିକୁ ବିଚାରକୁ ନେଇ ସେ ବିଶ୍ୱର ଉତ୍ପତ୍ତି, ବିବର୍ତ୍ତନ ଓ ପରିଣତି ସମ୍ପର୍କରେ ତାତ୍ତ୍ୱିକ ସ୍ପଷ୍ଟୀକରଣ ଯୋଗାଇ ଦେବାକୁ ଚାହୁଁଛି ।

ଶ୍ୟାମ କୌତୂହଳୀ ହୋଇ ପଚାରିଲା, ସାର୍ ! ଆପଣ ତ ମହାକର୍ଷଣ ବଳ ସମ୍ପର୍କରେ ପ୍ରାତଃସ୍ମରଣୀୟ ବୈଜ୍ଞାନିକ ନିଉଟନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ସୂତ୍ରଟିକୁ ଆମ୍ଭମାନଙ୍କୁ ବୁଝାଉଥିଲେ ! ମହାକର୍ଷଣ ବଳର କରାମତି ସମ୍ପର୍କରେ ମନୁଷ୍ୟ ଅବଗତ ହୋଇଛି । ଏଇ ବଳର ପ୍ରଭାବ ଯୋଗୁଁ ବିଶ୍ୱର ଅବସ୍ଥା ସମ୍ପର୍କରେ ଆମେ କ'ଣ ଏ ପର୍ଯ୍ୟନ୍ତ ନିର୍ଭୁଲ ସିଦ୍ଧାନ୍ତରେ ଉପନୀତ ହୋଇନାହୁଁ ?

ମାଷ୍ଟ୍ରେ ଉତ୍ତର ଦେଲେ, ବିଜ୍ଞାନର ମହତ୍ତ୍ୱ ତ ସେଇଠି ! ଆଲୋକର ପ୍ରକୃତି ସମ୍ପର୍କରେ ଆମେ ଯେପରି ଶେଷ ନିଷ୍ପତ୍ତି ଗ୍ରହଣ କରିବା ସମ୍ଭବ ହୋଇନାହିଁ, ମହାକର୍ଷଣ ବଳ ମଧ୍ୟ ଆମ୍ଭମାନଙ୍କୁ ତଦନୁରୂପ ବିଭ୍ରାନ୍ତକର ପରିସ୍ଥିତିର ସମ୍ମୁଖୀନ କରାଇଛି । ଏହି ମହାକର୍ଷଣ ବଳ ହିଁ ବିଜ୍ଞାନର ଜନକ । ଜ୍ୟୋତିଷରୁ ଜ୍ୟୋତିର୍ବିଜ୍ଞାନ ଏ ଜ୍ୟୋତିର୍ବିଜ୍ଞାନରୁ ଜ୍ୟୋତିଃପଦାର୍ଥ ବିଜ୍ଞାନର ଉତ୍ପତ୍ତି ।

ପରମାଣୁ ପଦାର୍ଥ ବିଜ୍ଞାନ, ନିଉକ୍ଲିଆର୍ ପଦାର୍ଥ ବିଜ୍ଞାନ ଓ କଣିକା ପଦାର୍ଥ ବିଜ୍ଞାନ ପ୍ରଭୃତି ବିଜ୍ଞାନର ବିଭିନ୍ନ ବିଭାଗର ସମୃଦ୍ଧି ସାଧନ ପାଇଁ ଜ୍ୟୋତିର୍ବିଜ୍ଞାନ ହିଁ ପଥ ପ୍ରଦର୍ଶନକାରୀ ଭୂମିକା ଗ୍ରହଣ କରିଛି । ଆମେ ଜାଣିଗଲୁଣି ଯେ, ନିଉକ୍ଲିଆର ବଳ, ବିଦ୍ୟୁତ-ଚୁମ୍ବକୀୟ ବଳ, ଦୁର୍ବଳ ଅନ୍ତଃକ୍ରିୟା ଓ ମହାକର୍ଷଣ ବଳ ଭଳି ଚାରି ପ୍ରକାର ବଳର ପ୍ରଭାବ ଯୋଗୁଁ ଏ ବିଶ୍ୱରେ ସବୁ ପ୍ରକାର ଘଟଣା ଘଟୁଛି ।

ମାତ୍ର ଆଶ୍ଚର୍ଯ୍ୟର କଥା ଯେ ଯେଉଁ ମହାକର୍ଷଣ ବଳ ସଂପର୍କରେ ସର୍ବପ୍ରଥମେ ଅନୁସନ୍ଧାନ ଚଳାଇବା ଦ୍ୱାରା ପଦାର୍ଥ ବିଜ୍ଞାନର ତ୍ୱରାନ୍ୱିତ ବିକାଶ ସମ୍ଭବ ହୋଇଛି, କେବଳ ଏହି ବଳଟିର ଅସଲ ରୂପକୁ ଆମେ ଏ ପର୍ଯ୍ୟନ୍ତ ଚିହ୍ନି ପାରୁନାହୁଁ । ଅନ୍ୟ ତିନୋଟି ବଳର କାର୍ଯ୍ୟକାରିତା ସମ୍ପର୍କରେ କ୍ୱାଣ୍ଟମ୍ ତତ୍ତ୍ୱାଶ୍ରୟୀ ବୋଧଗମ୍ୟ ସ୍ପଷ୍ଟୀକରଣ ମିଳିଥିଲେ ମଧ୍ୟ ମହାକର୍ଷଣ ବଳର ପ୍ରଭାବକୁ କ୍ୱାଣ୍ଟମ୍ ତତ୍ତ୍ୱାବଲମ୍ବନରେ ବୁଝାଇଦେବା ସମ୍ଭବ ହେଉନାହିଁ ।

ନିଉଟନ ଏ ବିଷୟରେ ଯେଉଁ ସ୍ପଷ୍ଟୀକରଣ ଯୋଗାଇ-ଥିଲେ, ଚଳିତ ଶତାବ୍ଦୀରେ ଆଲବର୍ଟ ଆଇନଷ୍ଟାଇନ ତାହାକୁ ବଦଳାଇ ପାରିଛନ୍ତି । ଆଇନଷ୍ଟାଇନଙ୍କ ସାର୍ବତ୍ରିକ ଆପେକ୍ଷିକ ତତ୍ତ୍ୱ ଓ କ୍ୱାଣ୍ଟମ୍ ତତ୍ତ୍ୱ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ପୂର୍ବକ ମହାକର୍ଷଣ ବଳର କାର୍ଯ୍ୟକାରିତାକୁ ବୋଧଗମ୍ୟ ମାର୍ଗରେ ବୁଝାଇ ଦେବାର ଉଦ୍ୟମ ଏ ଯାବତ୍ ଅବ୍ୟାହତ ରହିଛି ।

ଶ୍ୟାମ ମନରେ ବିଜ୍ଞାନ ସମ୍ପର୍କରେ ଗୋଟିଏ ସ୍ପଷ୍ଟ ଧାରଣା ଅଙ୍କିତ ହୋଇଗଲା । ସେ ନିଜ କୌତୂହଳ ମେଣ୍ଟାଇବା ଉଦ୍ଦେଶ୍ୟରେ ମାଷ୍ଟ୍ର ମହୋଦୟଙ୍କୁ ପଚାରିଲା, ସାର୍ ! ମୁଁ ଆପଣଙ୍କ ଆଲୋଚନାରୁ ଜାଣିପାରୁଛି ଯେ ବିଜ୍ଞାନ ମନୁଷ୍ୟର ସୃଷ୍ଟିଶୀଳ ପ୍ରତିଭାର ପରିପ୍ରକାଶ । ପ୍ରକୃତି ପ୍ରେମୀ ବୈଜ୍ଞାନିକ ବିଜ୍ଞାନର ରହସ୍ୟ ଉନ୍ମୋଚନ କରିବାକୁ ପ୍ରୟାସୀ ହୁଅନ୍ତି ।

ମାତ୍ର ବର୍ତ୍ତମାନ ବିଜ୍ଞାନକୁ କେନ୍ଦ୍ର କରି ଏକ ବିବଦମାନ ପରିସ୍ଥିତି ସୃଷ୍ଟି ହୋଇନାହିଁ କି ? ଯେଉଁ ବିଜ୍ଞାନର କରାମତି ଯୋଗୁଁ କୃଷି, ଚିକିତ୍ସା, ଶିକ୍ଷା, ଯୋଗାଯୋଗ ଓ ପରିବହନ ପ୍ରଭୃତି କ୍ଷେତ୍ରର ପ୍ରଭୂତ ଉନ୍ନତି ଘଟିଛି ଏବଂ ମନୁଷ୍ୟ ଆରାମଦାୟକ ଜୀବନଯାପନ କରିବାକୁ ସମର୍ଥ ହୋଇଛି, ତାହାର ଅଦୂରଦର୍ଶୀ ତଥା ସ୍ୱାର୍ଥପର ବିନିଯୋଗ ଯୋଗୁଁ ମନୁଷ୍ୟ ସମେତ ସମଗ୍ର ଜୀବଜଗତ ନିଶ୍ଚିହ୍ନ ହେବାର ଆଶଙ୍କା ଉପୁଜି ନାହିଁ କି ? ବହୁ ବ୍ୟକ୍ତି ବର୍ତ୍ତମାନ ପ୍ରଳୟଙ୍କରୀ ମାରଣାସ୍ତ୍ରଗୁଡ଼ିକର ବିଭୀଷିକା ତଥା ପରିବେଶର ପ୍ରଦୂଷଣ ପାଇଁ ବିଜ୍ଞାନକୁ ଦାୟୀ କରୁଛନ୍ତି । ଏପରି ଘଟୁଛି କାହିଁକି ?

ଶ୍ୟାମର ଜେଜେ ବାପା ମଧ୍ୟ ଖଟ ଉପରେ ବସି ଏ ପ୍ରକାର ଆଲୋଚନାକୁ ଉପଭୋଗ କରୁଥିଲେ । ସେ କହିଲେ, ତୁମେ ଯେତେ ଯାହା କହ, ସବୁ ଅଲକ୍ଷଣ ବିଲକ୍ଷଣ ପାଇଁ ଏଇ ବିଜ୍ଞାନ ହିଁ ଦାୟୀ । ଏହା ମଣିଷକୁ ଧର୍ମଛଡ଼ା କରିଛି । ସେ ନିଜେ ନିଜକୁ ସୃଷ୍ଟିକର୍ତ୍ତା ବୋଲି ବିଚାରୁଛି । ବିଜ୍ଞାନ ମଣିଷକୁ ସ୍ୱାର୍ଥପର କରିଛି । ସେ ଅନ୍ୟକୁ ଶୋଷଣ

କରି ନିଜ ପ୍ରଭୃତ୍ବ ବିସ୍ତାର କରିବା ପାଇଁ ବିଜ୍ଞାନକୁ ହାତ ବାରିସୀ ଭାବରେ ପ୍ରୟୋଗ କରୁଛି ।

ପ୍ରତ୍ୟେକ ମଣିଷ, ପ୍ରତ୍ୟେକ ଗୋଷ୍ଠୀ, ପ୍ରତ୍ୟେକ ସମାଜ ଓ ପ୍ରତ୍ୟେକ ଦେଶ ବିଜ୍ଞାନ ବଳରେ ବଳୀୟାନ ହୋଇ ଅନ୍ୟକୁ ଶୋଷଣ କରିବା ପାଇଁ ଉଦ୍ୟମ ଚଳାଇବା ଫଳରେ ସାରା ପୃଥିବୀରେ ଅଶାନ୍ତି, ଉତ୍ତେଜନା ଓ ବ୍ୟଭିଚାର ସୃଷ୍ଟି ହେଉଛି । ଅର୍ଥ ଓ କ୍ଷମତା ପାଗଳ ଲୋକମାନେ ବିଜ୍ଞାନ ଓ ଟେକ୍‌ନୋଲଜିର ଅବଦାନଗୁଡ଼ିକୁ ହାତ ପାହାନ୍ତାରେ ପାଇବା ପାଇଁ ବ୍ୟାକୁଳ ହେଉଛନ୍ତି । ଲୋକମାନଙ୍କ କ୍ରମବର୍ଦ୍ଧମାନ କାମନାର କୌଣସି ସୀମା ରହୁନାହିଁ ।

ସମସ୍ତେ କେବଳ ନିଜ ନିଜର ଅର୍ଥ ଓ କ୍ଷମତା ବଢ଼ାଇବାରେ ବ୍ୟସ୍ତ । ମନୁଷ୍ୟ ଚରମ ବସ୍ତୁବାଦୀ ମନୋଭାବର ବଶବର୍ତ୍ତୀ ହୋଇଛି । ସତ୍ୟ, ଶିବ, ସୁନ୍ଦରର ଉପାସନା ପାଇଁ ତା' ମନ ବଳୁନାହିଁ । ସୌନ୍ଦର୍ଯ୍ୟାନୁରାଗ, ବିଶ୍ୱଜନ ପ୍ରୀତି, ସମ୍ବେଦନଶୀଳତା ଆଦି ମାନବିକତାବୋଧ ସମ୍ପନ୍ନ ସୁଗୁଣ-ଗୁଡ଼ିକୁ ପାଶୋରି ପକାଇବାକୁ ସେ ଶ୍ରେୟସ୍କର ମଣୁଛି ।

ବିଜ୍ଞାନ କେବଳ ବାହ୍ୟ ପରିବେଶକୁ ବୀଭତ୍ସ ଓ ପ୍ରଦୂଷିତ କରୁନାହିଁ, ସମକାଳୀନ ଭାବରେ ଏହା ମନୁଷ୍ୟର ନୈତିକ ଓ ଆତ୍ମିକ ପରିବେଶକୁ ମଧ୍ୟ ପ୍ରଦୂଷିତ କରୁଛି । କ'ଣ ମାଷ୍ଟ୍ରେ ! ମୁଁ କିଛି ଭୁଲ କହୁଛି କି ?

ମାଷ୍ଟ୍ର ମହୋଦୟ ଶ୍ୟାମର କେକେ ବାପାଙ୍କର ଏପରି ପ୍ରଶ୍ନବାଣରେ ଆଦୌ ବିଚଳିତ ହେଲେ ନାହିଁ । ସେ

କହିଲେ, ଆଜ୍ଞା ! ଯାହା ଯେପରି ଘଟୁଥିବା ସମ୍ପର୍କରେ ଆପଣ କହିଲେ, ସେ ସବୁ ସତ କଥା । ମାତ୍ର ବୁଝାମଣା ଯୋଗୁଁ ଆମେ ଏଥିପାଇଁ ବିଜ୍ଞାନକୁ ଦାୟୀ କରୁଛୁ ।

କବି, କଳାକାର, ସଙ୍ଗୀତଜ୍ଞ ଓ ଅନ୍ୟାନ୍ୟ ସୃଷ୍ଟିଶୀଳ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନଙ୍କ ଭଳି ବୈଜ୍ଞାନିକମାନେ ନିଜ ନିଜ ସୃଷ୍ଟିଶୀଳ ପ୍ରତିଭାର ସଦୁପଯୋଗ କରିବା ଫଳରେ ବିଜ୍ଞାନର କ୍ରମସମୃଦ୍ଧି ସାଧିତ ହୁଏ । ଆଭିମୁଖ୍ୟ ଓ ଭାବ ପ୍ରକାଶର ଭଙ୍ଗୀରେ ବିଭିନ୍ନତା ପରିଲକ୍ଷିତ ହେଉଥିଲେ ହେଁ ସବୁ ସାଂସ୍କୃତିକ ବିଭାବର ଉତ୍ସ ଗୋଟିଏ । ଅନ୍ତଃଦୃଷ୍ଟି, ଅବବୋଧ, ଦୂରଦର୍ଶିତା ଓ କଳ୍ପନାପ୍ରବଣତା ବଳରେ ପ୍ରତ୍ୟେକେ ପ୍ରକୃତିକୁ ଚିହ୍ନିବା ପାଇଁ ଚେଷ୍ଟା କରନ୍ତି ।

ବୈଜ୍ଞାନିକମାନଙ୍କର ସ୍ୱାତନ୍ତ୍ର୍ୟ ହେଉଛି ଯେ ସେମାନେ ବାହ୍ୟ ଜଗତର କ୍ରିୟାଶୀଳତା ସମ୍ପର୍କରେ ସ୍ପଷ୍ଟୀକରଣ ଯୋଗାଇ ପାରନ୍ତି । ବୈଜ୍ଞାନିକ ଗବେଷଣାଲବ୍ଧ ଜ୍ଞାନକୁ ବ୍ୟାବହାରିକ କ୍ଷେତ୍ରରେ ବିନିଯୋଗ କରାଯିବା ଉଦ୍ଦେଶ୍ୟରେ ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞମାନେ ବୁଦ୍ଧି ଖଟାନ୍ତି । ବିଜ୍ଞାନର ଅଗ୍ରଗତି ସହ ତାଳ ମିଳାଇ ପ୍ରଯୁକ୍ତି ବିଦ୍ୟାର କ୍ରମୋନ୍ନତି ସାଧିତ ହୁଏ । ଏତଦ୍ଦ୍ୱାରା ମଣିଷର ଇଷ୍ଟ ବା ଅନିଷ୍ଟ ଘଟିପାରେ ।

ପ୍ରାୟୋଗିକ କ୍ଷେତ୍ରରେ ନିୟୋଜିତ ହେବା ପାଇଁ ଉଦ୍ଦିଷ୍ଟ ଉଦ୍ଭାବନଗୁଡ଼ିକୁ ସାମାଜିକ କଟକଣା ବଳରେ ନିୟନ୍ତ୍ରିତ କରାଯିବା ସମ୍ଭବ ହେଉ ନଥିବା ଯୋଗୁଁ ହିଁ ଆଜି

ପୃଥିବୀ ବକ୍ଷରେ ଏପରି ଆତଙ୍କପ୍ରଦ ପରିସ୍ଥିତି ସୃଷ୍ଟି ହୋଇଛି । ମଣିଷ କେବଳ ବାହ୍ୟ ଜଗତ ସମ୍ବନ୍ଧରେ ମିଳୁଥିବା ଜ୍ଞାନକୁ ସମ୍ବଳ କରି ନିଜ ଅବସ୍ଥାର କ୍ରମୋନ୍ନତି ଘଟାଇବା ପାଇଁ ଆକୁଳ ହେଉଛି ।

ପାଶ୍ଚାତ୍ୟ ବିଜ୍ଞାନୋନ୍ନତ ରାଷ୍ଟ୍ରମାନଙ୍କରେ ଏହି ପରମ୍ପରା ପ୍ରାୟ ୩୦୦ବର୍ଷ ବ୍ୟାପୀ ବଜାୟ ରଖିବା ଫଳରେ ତଥା ଅନୁନ୍ନତ ଓ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ସ୍ୱାଧୀନତା ପ୍ରାପ୍ତି ପରେ ଏପରି ପରମ୍ପରାର ଅନୁଗାମୀ ହେବା ଫଳରେ ପୃଥିବୀ ବକ୍ଷରେ ଏପରି ବିଲକ୍ଷଣଗୁଡ଼ିକର ତାଡ଼ନା ଅସହ୍ୟ ଅବସ୍ଥାରେ ଉପନୀତ ହୋଇଛି ! ଏପରି କର୍ମତତ୍ପରତା ମନୁଷ୍ୟକୁ ଆତ୍ମ-ବିସ୍ମୃତ କରିଛି ।

ଯେଉଁ ପ୍ରକାର ପାରସ୍ପରିକ ନିର୍ଭରଶୀଳତା ବିନିମୟରେ ମେ ଇତର ପ୍ରାଣୀ ଓ ଜୀବ ଜଗତ ସହିତ ଧରଣୀ ବକ୍ଷରେ ତିଷ୍ଠିବାକୁ ସମର୍ଥ ହୋଇଛି, ଯେଉଁ ପ୍ରକାର ନୈତିକତା, ଚରିତ୍ରବତ୍ତା, ମାନବିକତାବୋଧ ସମ୍ପନ୍ନ ଗୁଣଗୁଡ଼ିକର ପରିସ୍ଫୁଟନ ଯୋଗୁଁ ସମାଜରେ ସୁଖ ଶାନ୍ତି ବଜାୟ ରଖିବାର ଅବକାଶ ରହିଛି, ଯେଉଁ ପ୍ରକାର ଆତ୍ମିକ ଉପଲବ୍ଧି, ଆଧ୍ୟାତ୍ମିକ ଚିନ୍ତନ ଓ ସୌନ୍ଦର୍ଯ୍ୟାନୁରାଗ ମଣିଷକୁ ଶାନ୍ତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ତା' ମନରେ ମହତ୍ ଭାବନାଗୁଡ଼ିକର ଉଦ୍ରେକ ଘଟାଇବାର ଅବକାଶ ରହିଛି-- ସେହି ସମସ୍ତ ଦାୟିତ୍ୱବୋଧରୁ ସେ ନିଜକୁ ମୁକ୍ତ କରିଛି ।

କେବଳ ବିଜ୍ଞାନ ବଳରେ ଅର୍ଥ, କ୍ଷମତା ଓ ପ୍ରତିପତ୍ତି ବଢ଼ାଇବା ଭଳି ଏକଦେଶୀ କର୍ମପ୍ରବଣତା ହିଁ ତାକୁ ଯନ୍ତ୍ରବତ୍ କର୍ମଚଞ୍ଚଳ କରୁଛି ।

ନିଜ ଅନ୍ତଃନିବିଷ୍ଟ ଜଗତକୁ ସେ ପାଶୋରି ପକାଇବା ଫଳରେ ସମାଜରେ କଳା ଓ ଧର୍ମର ଭୂମିକା ଗୌଣ ହୋଇଛି । ଅନ୍ତଃନିବିଷ୍ଟ ଜଗତ ଓ ବାହ୍ୟ ଜଗତ ମଧ୍ୟରେ ସନ୍ତୁଳିତ ସମନ୍ୱୟ ରକ୍ଷା କରିବା ଯୋଗୁଁ ହିଁ ମନୁଷ୍ୟ ମନୁଷ୍ୟ ପଦବାଚ୍ୟ ଜୀବନଯାପନ କରିପାରେ ।

ସେ ନିଜ ଅନ୍ତଃନିବିଷ୍ଟ ଜଗତର ପରିପୁଷ୍ଟି ପାଇଁ କଳା, ସାହିତ୍ୟ, ସଙ୍ଗୀତ ଓ ଧର୍ମର ଅନୁଗାମୀ ହୁଏ । ଏଥିପାଇଁ ତା' ମନରେ ଦୟା, କ୍ଷମା, ସମ୍ବେଦନା ଆଦି ମାନବିକତାବୋଧସମ୍ପନ୍ନ ଭାବନା ଜାଗ୍ରତ ହୁଏ । ଏପରି ଭାବନାର ବଶବର୍ତ୍ତୀ ହେବା ଯୋଗୁଁ ହିଁ ସେ ବିଜ୍ଞାନର ଅବଦାନଗୁଡ଼ିକର ପ୍ରାୟୋଗିକ ବିନିଯୋଗ କରାଯିବା ବ୍ୟାପାରରେ ଜନକଲ୍ୟାଣମୁଖୀ ଆଭିମୁଖ୍ୟର ବଶବର୍ତ୍ତୀ ହୁଏ ।

ବିଜ୍ଞାନର ଅବଦାନଗୁଡ଼ିକୁ 'ସର୍ବଜନ ହିତାୟ, ସର୍ବଜନ ସୁଖାୟ' ଭଳି ମହାନ୍ ଆଦର୍ଶ ବିନିମୟରେ କାର୍ଯ୍ୟକାରୀ କରାଇବା ପାଇଁ ଯେଉଁ ପ୍ରକାର ମନୋବୃତ୍ତିର ସ୍ପୃହଣୀୟତା ଆବଶ୍ୟକ ହେଉଛି, ବାସ୍ତବ କ୍ଷେତ୍ରରେ ତାହାର ପ୍ରଚଳନ ପାଇଁ ଆଜିର ସମାଜ ଅସମର୍ଥ ହୋଇଛି । କ୍ଷମତା-ସମ୍ପନ୍ନ ବ୍ୟକ୍ତିମାନେ, ସମାଜର କର୍ଣ୍ଣଧାରମାନେ ତଥା ରାଜନୈତିକ ନେତୃବର୍ଗ କେବଳ ଅର୍ଥ ଓ କ୍ଷମତାର ଅନୁଧାବନ କରିବା ଯୋଗୁଁ କଳା, ଧର୍ମ ଓ ବିଜ୍ଞାନର ସନ୍ତୁଳିତ ସହାବସ୍ଥାନ ସମ୍ଭବ ହେଉନାହିଁ ।

ପିଲାମାନଙ୍କ ବ୍ୟକ୍ତିତ୍ୱ ଗଠନ ପର୍ବ ଆରମ୍ଭ ହେବାଠାରୁ ସେମାନଙ୍କୁ ଯଦି ଠିକଣା ଭାବରେ ଶିକ୍ଷାଦାନ କରାଯିବା ସମ୍ଭବ ହୁଅନ୍ତା, ତାହାହେଲେ ସମାଜ ଏପରି ଦୁରବସ୍ଥାର ସମ୍ମୁଖୀନ ହୁଅନ୍ତା ନାହିଁ । ପୃଥିବୀର ବହୁ ବିଜ୍ଞ ବ୍ୟକ୍ତି ବର୍ତ୍ତମାନ ଏ ଦିଗରେ ମନୋନିବେଶ କଲେଣି । ସେମାନେ ବୁଝାଇ-ଦେଉଛନ୍ତି ଯେ ଧର୍ମ ଓ ବିଜ୍ଞାନ ପରସ୍ପରର ପରିପୂରକ ।

ମନୁଷ୍ୟର ମାନସିକ ଭାରସାମ୍ୟର ସୁରକ୍ଷା ପାଇଁ କଳା, ଧର୍ମ ଓ ବିଜ୍ଞାନର ସନ୍ତୁଳିତ ସହାବସ୍ଥାନ ଏକାନ୍ତ ଆବଶ୍ୟକ । ଏପରି ପୂର୍ଣ୍ଣତା ଅଭିମୁଖୀ ଶିକ୍ଷାର ଅଭାବ ଯୋଗୁ ହିଁ ମଣିଷ ଅମଣିଷ ହେଉଛି । ଅର୍ଥ ଓ କ୍ଷମତାର ଲୋଭ ତାକୁ ପଶୁରେ ପରିଣତ କରୁଛି । ସେ ଉଚ୍ଚ ବେତନ ଓ କ୍ଷମତା ଆଶାରେ ନିଜ ବୁଦ୍ଧିକୁ ବିକି ଦେବାକୁ କୁଣ୍ଠାବୋଧ କରୁ-ନାହିଁ ।

ଏଇସବୁ ଘଟଣା ଲକ୍ଷ୍ୟ କରିବା ପରେ ତଥା ନିଜ ତିକ୍ତ ଅଭିଜ୍ଞତାରୁ ଶିକ୍ଷା ଲାଭ କରିବା ପରେ ଆମେ ବର୍ତ୍ତମାନ ଗୋଟିଏ ଶିକ୍ଷାନୀତି ପ୍ରଣୟନ କରିଛୁ । ଏଥିରୁ ପୂର୍ଣ୍ଣତାଭି-ମୁଖୀ ଶିକ୍ଷା ପ୍ରଦାନ କରାଯିବା ଦିଗରେ ଅଗ୍ରାଧିକାର ଆରୋପିତ ହୋଇଛି ।

ଆଶା କରାଯାଉଛି ଯେ ଏତଦ୍ଦ୍ୱାରା ଆମ ଦେଶର ଭବିଷ୍ୟତର ନାଗରିକମାନେ ମଣିଷର ଅନନ୍ୟ ବୈଶିଷ୍ଟ୍ୟ ସମ୍ପର୍କରେ ସଚେତନ ହେବା ସଙ୍ଗେ ସଙ୍ଗେ ବିଜ୍ଞାନର ଜନ କଲ୍ୟାଣକାମୀ ଉପଯୋଗ କରିବା ପାଇଁ ସ୍ୱତଃପ୍ରବୃତ୍ତ

ଭାବରେ ଆଗ୍ରହୀ ହେବେ । ସେମାନଙ୍କ ସୁଦୃଢ଼ ଜନମତ ହିଁ ବିଜ୍ଞାନର ଜନହିତକାରୀ ଉପଯୋଗ ପାଇଁ ରାଜନୈତିକ ନେତୃବର୍ଗଙ୍କ ହାତମୁଠାକୁ ଟାଣି କରିବ ।

ଶ୍ୟାମର ଜେଜେ ବାପାଙ୍କୁ ଜଥାଟା ବୁଝାଇ ଦେବା ଉଦ୍ଦେଶ୍ୟରେ ମାଷ୍ଟ୍ରେ ଉତ୍ସାହିତ ହୋଇ ଏକା ନିଃଶ୍ୱାସରେ ଏତେ କଥା କହିଦେଲେ । ଶ୍ୟାମ ଧୀର ସ୍ଥିର ଭାବରେ ବସି ସବୁ ଶୁଣୁଥିଲା । ଗାଁର ଆଉ ଚାରି ପାଞ୍ଚ ଜଣ ଲୋକ ମଧ୍ୟ ସେତେବେଳକୁ ରାମ ମିଶ୍ରଙ୍କ ଘରେ ଗପସପ କରିବା ପାଇଁ ଆସିଥିଲେ ।

ଆଲୋଚନାର ଆସରଟା ବେଶ୍ ଜମି ଆସିଲା । ମାଷ୍ଟ୍ର ମହୋଦୟଙ୍କ ବକ୍ତବ୍ୟ ଶେଷ ହୋଇଯିବା କ୍ଷଣି ଶ୍ୟାମ ପଚାରିଲା, ସାର୍ ! ଆପଣ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ-ନାହାନ୍ତି । ମଣିଷ ପ୍ରାକୃତିକ ପରିବେଶକୁ ଯେପରି ପ୍ରଦୂଷିତ କରୁଛି ଏବଂ ଅଜ୍ଞତା ଯୋଗୁଁ ପ୍ରଚଳିତ ଆଦର୍ଶର ମୋହକୁ ତ୍ୟାଗ କରି ନ ପାରିବା ଫଳରେ ପ୍ରଦୂଷଣର ମାତ୍ରା ଯେପରି ବଢ଼ିବାରେ ଲାଗିଛି, ବିଜ୍ଞାନ ତାହାର ପ୍ରତିକାର ଦିଗରେ କିଛି କରିପାରିବ କି ?

ପ୍ରାସଙ୍ଗିକତା ଦୃଷ୍ଟିରୁ ଏପରି ଗୋଟିଏ ପ୍ରଶ୍ନର ତାତ୍ପର୍ଯ୍ୟକୁ ମାଷ୍ଟ୍ର ମହୋଦୟ ଭଲ ଭାବରେ ବୁଝି ପାରିଲେ । ସେ ଶ୍ୟାମକୁ ବୁଝାଇଦେବା ଉଦ୍ଦେଶ୍ୟରେ କହିଲେ, ସାରା ପୃଥିବୀରେ ବର୍ତ୍ତମାନ ପରିବେଶୀୟ ପ୍ରଦୂଷଣକୁ ରୋକିବା ପାଇଁ ଏବଂ ବିଭିନ୍ନ ପରିସଂସ୍ଥାଗୁଡ଼ିକୁ ସନ୍ତୁଳିତ ଅବସ୍ଥାରେ ରଖିବା ପାଇଁ ବ୍ୟାପକ ଆୟୋଜନ ଚାଲିଛି ।

ଯେଉଁ ବିଜ୍ଞାନର ସ୍ୱାର୍ଥାନ୍ୱେଷୀ ତଥା ଅଦୂରଦର୍ଶୀ ଉପଯୋଗ ଯୋଗୁଁ ବର୍ତ୍ତମାନ ଏପରି ବୀଭତ୍ସ ଓ ଆତଙ୍କ ପ୍ରଦାୟକ ପରିସ୍ଥିତିର ସୂତ୍ରପାତ ଘଟିଛି, ସେହି ବିଜ୍ଞାନ ହିଁ ଏହାର ନିରାକରଣ ଓ ନିୟନ୍ତ୍ରଣ ଦିଗରେ ନୂଆ ନୂଆ ଉପାୟ ବତାଇ ଦେଉଛି ।

ଉତ୍ପାଦନ ପ୍ରକ୍ରିୟାକୁ ଅକ୍ଷୁନ୍ନ ରଖାଯିବା ସଙ୍ଗେ-ସଙ୍ଗେ ପରିବେଶକୁ କିପରି ନିର୍ମଳ ରଖାଯିବ ଏବଂ ପରିସଂସ୍ଥାୟ ସନ୍ତୁଳନକୁ କିପରି ଅତୁଟ ରଖାଯିବ, ତତ୍-ସମ୍ପର୍କୀୟ ବହୁ ଗବେଷଣାଲବ୍ଧ ତଥ୍ୟକୁ ବର୍ତ୍ତମାନ କାର୍ଯ୍ୟକାରୀ କରାଯାଉଛି ।

ଆମ ଜାତୀୟ ସରକାରଙ୍କ ପରିବେଶ ମନ୍ତ୍ରଣାଳୟ ଏ ଦିଗରେ ପ୍ରଶଂସନୀୟ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରୁଛନ୍ତି । ବିଜ୍ଞାନସମ୍ମତ ପଦକ୍ଷେପଗୁଡ଼ିକୁ ଯଥାବିଧି କାର୍ଯ୍ୟକାରୀ କରୁ ନ ଥିବା ବ୍ୟକ୍ତିବିଶେଷ ବା ଅନୁଷ୍ଠାନ-ଗୁଡ଼ିକ ବିରୋଧରେ ଆଇନ୍‌ସମ୍ମତ ଦଣ୍ଡ ବିଧାନ କରିବା ପାଇଁ ଲୋକସଭା ଗୋଟିଏ ଆଇନ୍ ଅନୁମୋଦନ କରିଛି । ବିଶ୍ୱ ପରିବେଶ ଦିବସ ଏବେ ଆମ ବିଦ୍ୟାଳୟରେ ନିୟମିତ ଭାବରେ ପାଳନ କରାଯାଉଛି ।

ଚଳିତ ବର୍ଷ ଆମେ ଏ ବିଷୟଟିକୁ ଭଲ ଭାବରେ ବୁଝାଇ ଦେବା ପାଇଁ ଆମ ବିଦ୍ୟାଳୟକୁ ଜଣେ ଦୁଇ ଜଣ ବିଶେଷଜ୍ଞଙ୍କୁ ନିମନ୍ତ୍ରଣ କରିବା । ସେମାନଙ୍କ ବକ୍ତବ୍ୟରୁ ତୁ ଜାଣି ପାରିବୁ ଯେ କେବଳ ବିଜ୍ଞାନର ସମୃଦ୍ଧି ସାଧନ କରାଯିବା ଦ୍ୱାରା ତଥା ବିଜ୍ଞାନର ଅବଦାନଗୁଡ଼ିକୁ ସୁଶୃଙ୍ଖଳିତ

ମାର୍ଗରେ କାର୍ଯ୍ୟକାରୀ କରାଯିବା ଦ୍ୱାରା ହିଁ ମନୁଷ୍ୟର ଜୀବନ ଧାରଣର ମାନରେ କ୍ରମୋନ୍ନତ ଘଟିବା ସଙ୍ଗେ ସଙ୍ଗେ ପରିବେଶର ସୁରକ୍ଷା ପାଇଁ ଠିକଣା ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରାଯିବା ସମ୍ଭବ ହେବ ।

ବର୍ତ୍ତମାନ ବିଭିନ୍ନ ସମ୍ବାଦ ପତ୍ର, ରେଡ଼ିଓ, ଟେଲିଭିଜନ ଜରିଆରେ ଏ ବିଷୟରେ ବହୁ ଚିତ୍ତାକର୍ଷକ ତଥା ଶିକ୍ଷଣୀୟ ପ୍ରସଙ୍ଗର ଅବତାରଣା କରାଯାଉଛି ।

ଜନସାଧାରଣ ଏ ବିଷୟରେ ସଚେତନ ହେବା ଦ୍ୱାରା ହିଁ ନିଜ ନିଜର ଜୀବନ ଧାରଣର ମାନରେ କ୍ରମୋନ୍ନତ ଘଟାଇବା ସଙ୍ଗେ ସଙ୍ଗେ ନିଜ ନିଜ ସ୍ୱତଃସ୍ଫୂର୍ତ୍ତ ଉଦ୍ୟମ ବଳରେ ପରିବେଶକୁ ନିର୍ମଳ ରଖିବା ଦିଗରେ ଆଗ୍ରହୀ ହେବେ ।

ଶ୍ୟାମ କହିଲା, ସାର୍ ! ମୁଁ ଭାବିଥିଲି ଯେ ପ୍ରଗତି ଓ ପରିବେଶର ସୁରକ୍ଷା ପରସ୍ପରର ପରିପନ୍ଥୀ । ପ୍ରଗତିର ଧାରା ଯେତେ ଅଗ୍ରଗାମୀ ହୁଏ, ପରିବେଶ ତତ୍ତୁଲ୍ୟ ପରିମାଣରେ ପ୍ରଦୂଷିତ ହୋଇଯାଏ । ବର୍ତ୍ତମାନ ମୁଁ ବୁଝିପାରୁଛି ଯେ ଏ ପ୍ରକାର ଧାରଣା ଭୁଲ । ଜୀବନର ଲକ୍ଷ୍ୟ ତ୍ରୁଟି ସମ୍ବଳିତ ହୋଇଥିବା ଯୋଗୁଁ ଏବଂ ଅଜ୍ଞତା ଓ ଭୁଲ ବୁଝାମଣା ଯୋଗୁଁ ହିଁ ଏପରି ଘଟୁଛି ।

ଧରଣୀ ବାବୁ ଗାଁର ଜଣେ ମୁଖିଆ ଲୋକ । ସେ ଧୈର୍ଯ୍ୟର ସହ ବସି ସବୁକଥା ଶୁଣୁଥିଲେ । ଶ୍ୟାମର ବକ୍ତବ୍ୟ ଶେଷ ହୋଇଯିବା କ୍ଷଣି ସେ ମାଷ୍ଟ୍ର ମହୋଦୟଙ୍କୁ କହିଲେ, ଆପଣମାନେ କେବଳ ସ୍କୁଲରେ ଜାତୀୟ ବିଜ୍ଞାନ ଦିବସ

ପାଳନ କରୁଛନ୍ତି । ବର୍ଷକେ ଦିନେ ସଭା ସମିତି ଆୟୋଜନ କରିଦେବା ଦ୍ୱାରା କ'ଣ ଲୋକେ ବିଜ୍ଞାନର ଭୂମିକାକୁ ଠିକଣା ଭାବରେ ଜାଣିପାରିବେ ?

ଗାଁ ଲୋକେ ଅଜ୍ଞତାର ଅନ୍ଧକାରରେ ବୁଡ଼ି ରହିଛନ୍ତି । ସେମାନଙ୍କଠାରେ ବୈଜ୍ଞାନିକ ମିଜାଜ୍‌ର ଜାଗରଣ ପାଇଁ, ସେମାନଙ୍କ ରୁଚିକୁ ବିଜ୍ଞାନସମ୍ମତ ମାର୍ଗରେ ପରିମାର୍ଜିତ କରିବା ପାଇଁ ଆମେ କ'ଣ କେବଳ ସରକାରୀ ପ୍ରଚାର ମାଧ୍ୟମଗୁଡ଼ିକ ଉପରେ ନିର୍ଭର କରିବା ? ଏ ଦିଗରେ ଆପଣମାନଙ୍କ ଭଳି ଶିକ୍ଷିତ ବ୍ୟକ୍ତିମାନେ ତ କିଛି ଆଖିଦୃଶିଆ କାମ କରୁନାହାନ୍ତି ?

ମାଷ୍ଟ୍ରେ କହିଲେ, ଆମ ଦେଶରେ ବର୍ତ୍ତମାନ ଏ କାମ ଜୋର୍‌ସୋର୍‌ରେ ଆଗେଇ ଚାଲିଛି । ବିଶେଷତଃ କେରଳ ଓ ମହାରାଷ୍ଟ୍ରରେ ଅନ୍ୟାନ୍ୟ ଯାତ୍ରା ଓ ଉତ୍ସବଗୁଡ଼ିକୁ ଯେପରି ମହାସମାରୋହରେ ପାଳନ କରାଯାଉଛି, ଠିକ୍ ସେହିପରି ବିଜ୍ଞାନ ମେଳାକୁ ଗାଁ ଗହଳରେ, ସହରାଞ୍ଚଳରେ ଓ ଶିଳ୍ପାଞ୍ଚଳମାନଙ୍କରେ ଅନୁଷ୍ଠିତ କରାଯାଉଛି । ପଦଯାତ୍ରା, ପୋଷ୍ଟର, ପ୍ରଦର୍ଶନୀ, ଭାଷଣ, ଚିତ୍ତାକର୍ଷକ ସାଂସ୍କୃତିକ କାର୍ଯ୍ୟକ୍ରମଗୁଡ଼ିକ କରିଆରେ ଜନସାଧାରଣଙ୍କୁ ବିଜ୍ଞାନର ଅବଦାନଗୁଡ଼ିକ ସହିତ ପରିଚିତ କରାଯାଉଛି ।

ଏକ ବା ଦୁଇ ସପ୍ତାହ ବ୍ୟାପୀ ଅନୁଷ୍ଠିତ ବିଜ୍ଞାନ ଉତ୍ସବକୁ ପ୍ରତି ବର୍ଷ ରାଜ୍ୟର ବିଭିନ୍ନ ସ୍ଥାନମାନଙ୍କରେ

ଅନୁଷ୍ଠିତ କରାଯାଉଛି । ଜନସାଧାରଣଙ୍କ ମନରୁ ଅନ୍ଧବିଶ୍ୱାସ ଓ କୁସଂସ୍କାରଗୁଡ଼ିକୁ ଦୂର କରିବା ପାଇଁ ବିଭିନ୍ନ ପନ୍ଥାର ଆଶ୍ରୟ ନିଆଯାଉଛି । ଲକ୍ଷ୍ୟ କରାଯାଉଛି ଯେ, ଏତଦ୍ୱାରା ଅବହେଳିତ ଅଞ୍ଚଳର ଆଦିବାସୀ ଓ ଗିରିଜନମାନେ ମଧ୍ୟ ବିଶେଷ ଭାବରେ ପ୍ରଭାବିତ ହେଉଛନ୍ତି ।

ସାରା ଦେଶର ଜନସାଧାରଣଙ୍କ ମନରେ ବିଜ୍ଞାନ ପ୍ରତି ଆଗ୍ରହ ସୃଷ୍ଟି କରିବା ପାଇଁ ଏବଂ ବିଜ୍ଞାନାଶ୍ରୟୀ ପ୍ରଗତିକାମୀ ଯୋଜନାଗୁଡ଼ିକୁ ସେମାନଙ୍କ ସହଯୋଗ ବଳରେ କାର୍ଯ୍ୟକାରୀ କରାଇବା ପାଇଁ ଏପରି ଉଦ୍ୟମର ଯଥାର୍ଥତା ଉପଲବ୍ଧି ହେଲାଣି । ଆମ ରାଜ୍ୟରେ ଅବଶ୍ୟ ଏ କାର୍ଯ୍ୟ ବିଶେଷ ଆଗେଇ ନାହିଁ । କେବଳ ସରକାରୀ ଉଦ୍ୟମ ବଳରେ ଶିକ୍ଷା ବିଭାଗ କର୍ତ୍ତୃପକ୍ଷ ସ୍କୁଲ ଛାତ୍ରଛାତ୍ରୀମାନଙ୍କ ସହଯୋଗରେ ଜିଲ୍ଲା ସ୍ତରୀୟ ଓ ରାଜ୍ୟ ସ୍ତରୀୟ ବିଜ୍ଞାନ ମେଳାର ଆୟୋଜନ କରୁଛନ୍ତି ।

କେରଳ ଓ ମହାରାଷ୍ଟ୍ରରେ ଯେଉଁ ପ୍ରକାର ବିଜ୍ଞାନ ଉତ୍ସବର ଆୟୋଜନ କରାଯାଉଛି, ସେଥିରେ ସେହି ରାଜ୍ୟର ତରୁଣ ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନେ ଅଂଶ ଗ୍ରହଣ କରୁଛନ୍ତି । ସେମାନେ ସ୍ୱେଚ୍ଛାସେବକମାନଙ୍କୁ ତାଲିମ୍ ଦେଉଛନ୍ତି । ଏହି ଉତ୍ସବକୁ ଏପରି ମନମତାଣିଆ ଭାବରେ ଅନୁଷ୍ଠିତ କରାଯାଉଛି ଯେ ଲୋକେ ବିଜ୍ଞାନକୁ ସେମାନଙ୍କ ସଂସ୍କୃତିର ଅନ୍ୟତମ ବିଭାବ ରୂପେ ସ୍ୱୀକାର କରୁଛନ୍ତି । ଆମ ରାଜ୍ୟର ବୁଦ୍ଧିଜୀବୀମାନେ ଏପରି ବିଜ୍ଞାନ ଉତ୍ସବ ପାଳନ

କରିବା ପାଇଁ ଆଗେଇ ଆସିବା ବିଶେଷ ଯୁଗୋପଯୋଗୀ ବୋଧ ହେଉଛି ।

ରାମ ମିଶ୍ରେ ଚୁପ୍‌ଚାପ୍ ବସି ମାଷ୍ଟ୍ରଙ୍କ କଥା ଶୁଣୁଥିଲେ । ସେ କହିଲେ, ମାଷ୍ଟ୍ରେ ! ଆପଣ ନିଜେ ଗୋଟିଏ ଗୁରୁଦାୟିତ୍ୱ ବହନ କରିବାକୁ ହେବ । ଆମେ ବଡ଼ ବଡ଼ କଥାକୁ ଅପେକ୍ଷା କରିବା ନାହିଁ । ବିଜୁଳି ଆଲୁଅ ବା ପେଟ୍ରୋମାକ୍ସ ଆଲୁଅକୁ ଅପେକ୍ଷା କରିବା ପରିବର୍ତ୍ତେ ଅନ୍ଧାର ଘରକୁ ଆଲୋକିତ କରିବା ପାଇଁ ପ୍ରଥମେ ଦୀପଟିଏ ଜାଳିଦେବା ଶ୍ରେୟସ୍କର ନୁହେଁ କି ?

ଆପଣ ଆମ ଗାଁର ବିଜ୍ଞାନ ଶିକ୍ଷକ । ପ୍ରଥମେ ଆପଣ ଗାଁରେ ଗୋଟିଏ ବିଜ୍ଞାନ ମେଳାର ଆୟୋଜନ କରନ୍ତୁ । ଆମ ଗ୍ରାମବାସୀମାନେ ଏ ବ୍ୟାପାରରେ ଆନ୍ତରିକ ସହଯୋଗ କରିବେ । ଏହି ମେଳାଟି ଯଦି ସଫଳ ହୁଏ, ତାହାହେଲେ ଅନ୍ୟ ଗ୍ରାମବାସୀମାନେ ଏ ଦିଗରେ ଆଗ୍ରହୀ ହେବେ । ଆମ ମେଳାଟି ଯଦି ଠିକଣା ଭାବରେ ଅନୁଷ୍ଠିତ ହୋଇପାରେ, ତାହା ହେଲେ ଆପେ ଆପେ ଆମ୍ଭମାନଙ୍କୁ ସରକାରୀ ସାହାଯ୍ୟ ମିଳିଯିବ ।

ଏପରି ଭାବରେ ସାଙ୍ଗଠନିକ ଉଦ୍ୟମ ଚଳାଇବା ଦ୍ୱାରା ଆମେ ଆମ ରାଜ୍ୟର ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନଙ୍କୁ ଏ ମେଳା ସହିତ ସାମିଲ କରି ପାରିବା । ଆପଣ ଦେଖିବେ ଯେ ଅଚିରେ କେରଳ ଓ ମହାରାଷ୍ଟ୍ର ପରି ଆମ ରାଜ୍ୟରେ ମଧ୍ଯ ବିଜ୍ଞାନ-ଉତ୍ସବ ଅନୁଷ୍ଠିତ ହେବ । ଲୋକେ ବିଜ୍ଞାନର ଭୂମିକା, ଲକ୍ଷ୍ୟ ଓ ନିଜ ନିଜ ଦାୟିତ୍ୱବୋଧ ସମ୍ପର୍କରେ

ସଚେତନ ହେବା ପାଇଁ ଏହା ଉଦ୍ୟମ ନିଶ୍ଚିତ ଭାବରେ ଫଳପ୍ରଦ ଭୂମିକା ଗ୍ରହଣ କରିବ ।

ଉପସ୍ଥିତ ଅନ୍ୟ ଗ୍ରାମବାସୀମାନେ ରାମ ମିଶ୍ରଙ୍କ ପ୍ରସ୍ତାବଟିକୁ ସମର୍ଥନ କଲେ । ଗାଁରେ ବିଜ୍ଞାନ ମେଳା କାର୍ଯ୍ୟକ୍ରମ ସ୍ଥିର କରିବା ପାଇଁ ବୈଠକ ଘରେ ଏକାଠି ହେବା ଉଦ୍ଦେଶ୍ୟରେ ଗୋଟିଏ ନିଷ୍ପତ୍ତି ଗ୍ରହଣ କରାଗଲା ଏବଂ ମାଷ୍ଟ୍ର ମହୋଦୟଙ୍କୁ ଏହାର ସଂଯୋଜକ ଦାୟିତ୍ୱ ବହନ କରିବାକୁ ଅନୁରୋଧ କରାଗଲା ।

